# ବାଉଆ ମନ



ବାବାଜୀ

ଶ୍ରୀ ବୈଷ୍ଣବଚରଣ ଦାସ

ପ୍ରକାଶିକା—ଦୁର୍ଗା ଦେବୀ

# ବାଇଆ ମନ
## ବା
# ସୁମନ ଚଉତିଶା

କ ଠାରୁ କ୍ଷ ପର୍ଯ୍ୟନ୍ତ ମନବୋଧ ଉପଦେଶ ।

( ନବାନୁରାଗ ଚଉତିଶା ବୃତ୍ତେ )

( କ )

କହୁଛୁ ଏତକ ତୋତେ,
କର ସେବା ଗୁରୁ ଚରଣ ଗତେ, ରେ ବାଇଆ ମନ !
କାଳ ନ ଗ୍ରାସୁ ଯେମନ୍ତେ, ରେ ବାଇଆ ମନ (୧)

( ଖ )

ଖଳ ବୁଦ୍ଧିରେ ନ ପଡ଼,
ଖେଦ ନଦୀମାରେ କେଭେଁ ନ ବୁଡ଼, ରେ ବାଇଆ ମନ !
ଖରେ ସାଧୁସଙ୍ଗ ଲୋଡ଼, ରେ ବାଇଆ ମନ । (୨)

( ଗ )

ଗହ୍ୱର ଗୁଣକୁ ଗାଇ,
ଗଣ୍ଠିଧନ କର ସୁଧା ମାଧୋଇ, ରେ ବାଇଆ ମନ !
ଗଡ଼ ବୃନ୍ଦାବନେ ଯାଇଁ, ରେ ବାଇଆ ମନ । (୩)

( ଘ )

ଘଟଣ ଯୁଗଳ ରୂପ,
ଘଟ ପଦ୍ମଣକୁ ତହିଁ ସମର୍ପ, ରେ ବାଇଆ ମନ !
ଘୁଞ୍ଚିଯିବ *ତ୍ରିତାପ, ରେ ବାଇଆ ମନ । (୪)

( ଙ )

ଙହେ ବୋଲ ହର ହର,
ଉପାସନା-ବିଧି ଆଶ୍ରୟ କର, ରେ ବାଇଆ ମନ !
ଉଦାର ଭାବ ଆଚର, ରେ ବାଇଆ ମନ । (୫)

( ଚ )

ଚଇତନ୍ୟ ଗୁରୁ ତୋର,
ଚଞ୍ଚଳ ସ୍ୱଭାବ କରିବେ ଦୂର, ରେ ବାଇଆ ମନ !
ଚକ୍ଷୁ ଫେଇ ଲକ୍ଷ୍ୟ କର, ରେ ବାଇଆ ମନ । (୬)

( ଛ )

ଛଦ୍ମ, ଛଳ ପରହର,
ଛନ୍ଦା ପଦ୍ମପାଦେ ହୁଅ ଭ୍ରମର, ରେ ବାଇଆ ମନ !
ଛନକା ଯିବ ତୋହର, ରେ ବାଇଆ ମନ । (୭)

---

*ତ୍ରିତାପ - ଆଧ୍ୟାତ୍ମିକ, ଆଧିଭୌତିକ, ଆଧିଦୈବିକ

( ଜ )

ଜୟ ରାଧେ ଶ୍ୟାମ ବୋଲ,
ଜଞ୍ଜାଳ ମାୟାରୁ ହୁଅ ତୁ ଖାଲି, ରେ ବାଇଆ ମନ !
ଜପ ମହା ମନ୍ତ୍ର ଝୁଲି, ରେ ବାଇଆ ମନ । (୮)

( ଝ )

ଝଗଡ଼ା ପଥ ଉପେଖ,
ଝଳ ମାର୍ଗରେ ତୁ ହୁଅ ପଥିକ, ରେ ବାଇଆ ମନ !
ଝରାଇ ପ୍ରେମ ଲୋତକ, ରେ ବାଇଆ ମନ । (୯)

( ଞ )

ନିତ୍ୟାନନ୍ଦ ନିତ୍ୟ ଧାମ,
ନିଶି-ଦିବସରେ କର ତୁ ଧ୍ୟାନ, ରେ ବାଇଆ ମନ !
ନିଶ୍ଚେଁ ଲଭିବୁ ସୁଜ୍ଞାନ, ରେ ବାଇଆ ମନ । (୧୦)

( ଟ )

ଟପି ଯା ଭକ୍ତି-ଦୁଆର,
ଟେକ, କୁଳ, ଅଭିମାନ ତୋ ଦୂର, ରେ ବାଇଆ ମନ !
ଟାଳି ହୁଅ ନିର୍ବିକାର, ରେ ବାଇଆ ମନ । (୧୧)

( ଠ )

ଠକ ନୁହଁ ଧନ ଜଣେ,
ଠିକେ ଗୁରୁ କୃଷ୍ଣ ବୈଷ୍ଣବ ଗଣେ, ରେ ବାଇଆ ମନ !
ଠାବ କର ଅନୁକ୍ଷଣେ, ରେ ବାଇଆ ମନ । (୧୨)

( ଡ )

ଡର, ଘୃଣା, ଲାଜ ଛାଡ଼,
ଡୋର କଉପିନ କଣ୍ଠିରେ ଭିଡ଼, ରେ ବାଇଆ ମନ !
ଡେଉଁଥା ପ୍ରେମରେ ପଡ଼, ରେ ବାଇଆ ମନ । (୧୩)

( ଢ )

ଢମାଳିଆ ଗୀତ ଗାଇ,
ଢଳ ଢଳ ନାଚ ତାଳ ବଜାଇ, ରେ ବାଇଆ ମନ !
ଢମ ଗୁରୁଙ୍କ ଧୋଇ, ରେ ବାଇଆ ମନ । (୧୪)

( ଣ )

ଅଚିନ୍ତ୍ୟ ଅବ୍ୟକ୍ତ ଧନ,
ଅର୍ଜନେ ନ କର ଅଳସ ପଣ, ରେ ବାଇଆ ମନ !
ଅଯାଚକ ବୃତ୍ତି ଘେନ, ରେ ବାଇଆ ମନ । (୧୫)

( ତ )

ତରଳ ତରୁଣ ବେଶ,
ତନ୍ଦ୍ରିକ ମାଳ, ପୀତ ଝୀନବାସ, ରେ ବାଇଆ ମନ !
ତରକେ ଦେଖ ସେ ଦୃଶ୍ୟ, ରେ ବାଇଆ ମନ । (୧୬)

( ଥ )

ଥମ୍ଭରେ ଅଦ୍ଭୁତ କୁଞ୍ଜେ,
ସ୍ଥଳୀ କାଞ୍ଚନମଣିପୂରର ବଜେ, ରେ ବାଇଆ ମନ !
ଥକ ଯା ତନ୍ଦ୍ରିରେ ତୁ ନଟଜ, ରେ ବାଇଆ ମନ । (୧୭)

( ଦ )

ଦଳ ଅଷ୍ଟ ପଦ୍ମ ପରେ,
ଦରଶନ କର ସୂକ୍ଷ୍ମ ନେତ୍ରରେ, ରେ ବାଇଆ ମନ !
ଦକ୍ଷିଣ ବାମ ଢଗରେ, ରେ ବାଇଆ ମନ । (୧୮)

( ଧ )

ଧରଣ ମନ୍ତ୍ରସ୍ତ ନାମ,
ଧନ୍ୟ ସଖୀଙ୍କର ସଙ୍ଗିନୀ ପଣ, ରେ ବାଇଆ ମନ !
ଧୀରେ ତୁ ଶିଖ ଏ ଗୁଣ, ରେ ବାଇଆ ମନ । (୧୯)

( ନ )

ନବ ଲାବଣ୍ୟ ମୂରତି,
ନବୀନ କିଶୋର ନୀଳେନ୍ଦ୍ର କାନ୍ତି, ରେ ବାଇଆ ମନ !
ନୂଆ ଦାସୀ ହୃଅ ତଥି, ରେ ବାଇଆ ମନ । (୧୦)

( ପ )

ପଞ୍ଜରା ଭିତରେ ସାଥି,
ପର ଜୀବଘଟ ଅଛୁ ଆବୋରି, ରେ ବାଇଆ ମନ !
(ଦିନେ) ପଳାଇ ଯିବ ବାହାରି, ରେ ବାଇଆ ମନ । (୧୧)

( ଫ )

ଫଟା ମାଠିଆରେ ପାଣି,
ଫସ୍ ଫସ୍ ହୋଇ ବହେ ଉଜାଣି, ରେ ବାଇଆ ମନ !
ଫଳାକୁ ଜଗିଆ ଜାଣି, ରେ ବାଇଆ ମନ । (୧୨)

ବ )

ବର୍ଷା ଭାଙ୍ଗିଗଲା ବେଳେ,
ବନ୍ଧା ନୋହିବୁ ରୁ ଯେନ୍ତେଁ ଶୃଙ୍ଖଳେ, ରେ ବାଇଆ ମନ !
ବନ୍ଧୁର ସେ କଥା ହେଲେ, ରେ ବାଇଆ ମନ । (୧୩)

( ଭ )

ଭଗ ଶ ପାଲେ ନ ପଡ଼,
ଭଙ୍ଗା ଡଙ୍ଗାଟାରେ ଜାଣି ନ ଚଢ଼, ରେ ବାଇଆ ମନ !
ଭବ-ସାଗରେ ନ ବୁଡ଼. ରେ ବାଇଆ ମନ । (୨୪)

( ମ )

ମତ୍ତ ହସ୍ତୀ ବୋଲି ଗୁରୁ,
ମନ୍ତ୍ର ଗୁରୁ ଛନ୍ଦ ମାହୁନ୍ତ ହୋଇ, ରେ ବାଇଆ ମନ !
ମାଳଥା ତାଙ୍କୁ ଚଢ଼େଇ, ରେ ବାଇଆ ମନ । (୨୫)

( ଯ )

ଯମରାଜ ଦରବାରେ,
ଯଥାର୍ଥ ବିଚାର ହେଲା କାଳରେ, ରେ ବାଇଆ ମନ !
ଯୋଗ ଦେବ କେ ସେଠାରେ, ରେ ବାଇଆ ମନ । (୨୬)

( ର )

ରକ୍ଷା-କରତା ଶ୍ରୀଗୁରୁ ,
ରତ୍ନ ପଦାର୍ଥିତେ ଜାଣି ଆଗରୁ, ରେ ବାଇଆ ମନ !
ରହି ବାଞ୍ଛା କଳ୍ପତରୁ, ରେ ବାଇଆ ମନ । (୨୮)

( ଲ )

ଲକ୍ଷ୍ମୀ ଯା ଚରଣେ ଦାସୀ,
ଲବଙ୍ଗ ଲତା କାନନ-ବିଳାସୀ, ରେ ବାଇଆ ମନ !
ବୁଦ୍ଧି ଦିଏ ବଣା କର, ରେ ବାଇଆ ମନ । (୨୮)

( ବ )

ବଡ଼ ଲୋକ ବାବୁଗିରି,
ବହୁତ କାଳ ନ ଥାଏ ସବୁରି, ରେ ବାଇଆ ମନ !
ବୁଦ୍ଧି ଦିଏ ବଣା କର, ରେ ବାଇଆ ମନ । (୨୯)

( ଶ )

ଶମନ ପ୍ରକାର ଦୂତେ,
ଶେଷ କାଳେ ନ ଛୁଇଁବେ ଯେମନ୍ତେ, ରେ ବାଇଆ ମନ !
ଶିଖ ସେ ପାଠ କରତେ, ରେ ବାଇଆ ମନ । (୩୦)

( ଷ )

ଷଣ୍ଢ-ଅଇରଙ୍କ ତୁଲେ,
ଷଣ୍ଢପରି ଲଢ଼ି ଜିଣିବୁ ଭଲେ, ରେ ବାଇଆ ମନ !
ଷୋଳ ନାମ ମନ୍ତ୍ର ବଳେ, ରେ ବାଇଆ ମନ । (୩୧)

( ସ )

ସଂସାର ମାୟାର ଜାଲ,
ସତ୍ୱରେ ଛିଣ୍ଡା, ନୋହୁ କଲ ବଲ, ରେ ବାଇଆ ମନ !
ସନ୍ଥ ଗୁଣେ ହର କାଳ, ରେ ବାଇଆ ମନ । (୩୨)

( ହ )

ହରି ନାମ ମହାଧନ,
ହୃଦୟ-ଭଣ୍ଡାରୁ ନ କର ଶୂନ୍ୟ, ରେ ବାଇଆ ମନ !
ହେଲେ ବୋଲାଇବୁ ଧନ୍ୟ, ରେ ବାଇଆ ମନ । (୩୩)

( କ୍ଷ )

କ୍ଷମା, ଦୟା, ସତ୍ୟ, ଶାନ୍ତି,
କ୍ଷିତିରେ ଏ ଚାରି ଶୁଭ ଦଅନ୍ତି, ରେ ବାଇଆ ମନ !
କ୍ଷୁଦ୍ର ବୈଷ୍ଣବ ଭଣନ୍ତି, ରେ ବାଇଆ ମନ । (୩୪)

**ସ ମା ପ୍ତ**

